ଚତୁର୍ଦ୍ଦଶ ବାର୍ଷିକ

# କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ

ଉତ୍ସବ

( ମେ ମାସ ୧୭ ତାରିଖରୁ ୨୨ ତାରିଖ )



ଉଦ୍‌ଘାଟନ ବାସରରେ

ସ୍ୱାଗତ ସମିତିର ଅଧ୍ୟକ୍ଷ

**ପଦ୍ମଶ୍ରୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ**

ଏମ୍. ଏ., ଏଲ୍‌ଏଲ୍. ଡି. ଭାରତୀତୀର୍ଥ, ଇତିହାସରତ୍ନଙ୍କ

# ଅଭିଭାଷଣ

ଉପସ୍ଥିତ ଭାଇ ଓ ଭଉଣୀମାନେ !

କଳିଙ୍ଗଭାରତୀ ଓ ଉତ୍କଳ ଯୁବ-ସାହିତ୍ୟ-ସମାଜ ଏ ଦୁଇ ଅନୁଷ୍ଠାନ ଓଡ଼ିଶାରେ ଭଞ୍ଜଜୟନ୍ତୀର ଆଦ୍ୟ ପ୍ରବର୍ତ୍ତକ । ସେମାନଙ୍କ ଉଦ୍ୟମରେ ଭଞ୍ଜଜୟନ୍ତୀ ପନ୍ଦର ବର୍ଷ ହେଲା ପାଳିତ ହୋଇ ଆସୁଅଛି । ଏ ବର୍ଷ ତାହା ଷୋଡ଼ଶ ବର୍ଷରେ ପଦାର୍ପଣ କରୁଅଛି । ଜୟନ୍ତୀ ସ୍ୱାଗତ ସମିତିର ଅଧ୍ୟକ୍ଷରୂପେ ମୁଁ ଆପଣମାନଙ୍କୁ ସମସ୍ତଙ୍କୁ ସ୍ୱାଗତ କରିବାର ସୁଯୋଗ ପ୍ରାପ୍ତ ହୋଇଥିବାରୁ ଉଦ୍ୟୋକ୍ତାମାନଙ୍କୁ ଧନ୍ୟବାଦ ଦେଉଅଛି । ଆପଣମାନେ ଆଜ ଏଠାରେ ଅନ୍ୟାନ୍ୟ ବର୍ଷମାନଙ୍କ ପରି ଉପସ୍ଥିତ ହୋଇ ପୂଜ୍ୟପୂଜାରେ ଭାଗ ନେଉଅଛନ୍ତି । ଏ ପ୍ରୋତ୍ସାହନ ପାଇଁ ଉଦ୍ୟୋକ୍ତାମାନେ ଆପଣମାନଙ୍କ ନିକଟରେ ଋଣୀ । ଏହି ଷୋଡ଼ଶ-ବାର୍ଷିକ ଭଞ୍ଜଜୟନ୍ତୀର ଶୁଭ ପ୍ରଥମ ଦିବସରେ ମୁଁ ଆପଣମାନଙ୍କୁ ସମସ୍ତଙ୍କୁ ହାର୍ଦ୍ଦିକ ଅଭିନନ୍ଦନ କରୁଅଛି । ଜୟନ୍ତୀର ସମଗ୍ର ସପ୍ତାହର ବିଭିନ୍ନ କାର୍ଯ୍ୟକ୍ରମରେ ଆପଣମାନେ ଯୋଗ ଦିଅନ୍ତୁ ଓ ଏହି ଜାତୀୟ ସାରସ୍ୱତ ମହୋତ୍ସବକୁ ସର୍ବତୋଭାବରେ ସଫଳ କରନ୍ତୁ, ଏହାହିଁ ଆଜ ମୋର ଆପଣମାନଙ୍କ ନିକଟରେ ବିନମ୍ର ନିବେଦନ ।

ଯେଉଁ ମହାକବିଙ୍କ ଜୟନ୍ତୀ ପାଳନ କରିବାକୁ ଆମ୍ଭେମାନେ ଅଗ୍ରସର ହେଉଥାଇଁ, ସେ ଓଡ଼ିଆ ସଭ୍ୟତାର ଜଣେ ଶ୍ରେଷ୍ଠ ପ୍ରତିନିଧି ପୁରୁଷ । ତାଙ୍କ ବିଷୟରେ ସବୁକଥା ଆମ୍ଭମାନଙ୍କୁ ତନ୍ନ ତନ୍ନ କରି ମନେ ରଖିବାକୁ ହେବ ଓ ଦେଶର ତରୁଣ ଓ ଶିଶୁମାନଙ୍କୁ ମଧ୍ୟ ଶିକ୍ଷା ଦେବାକୁ ହେବ । ଜାତିର ଯେଉଁମାନେ ପିତୃପୁରୁଷ, ସେମାନଙ୍କ ବିଷୟରେ ଅଜ୍ଞତା ଦେଖାଇଲେ ତାହା ଅମାର୍ଜନୀୟ

ଅପରାଧ ହେବ । କୌଣସି ଜାଗ୍ରତ ବା ଜାଗରଣୋନ୍ମୁଖ ଜାତି ନିଜର ଇତିହାସ ପ୍ରତି ଆଦୌ ପରାଙ୍ମୁଖ ହୋଇ ନ ପାରେ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଗଞ୍ଜାମ ଜିଲ୍ଲାର ଘୁମୁସରରେ ଅବସ୍ଥିତ କୁଲାଡ଼ଗଡ଼ରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ନୀଳକଣ୍ଠ ଭଞ୍ଜ ଓ ପିତାମହଙ୍କ ନାମ ପ୍ରତାପ ଧନଞ୍ଜୟ ଭଞ୍ଜ । ଘୁମୁସରର ଏହି ଭଞ୍ଜ ରାଜବଂଶରେ ପୁରୁଷାନୁକ୍ରମେ ସାହିତ୍ୟସେବା ରହିଥିଲା । ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠ ଭଞ୍ଜ କବି ଥିଲେ ଓ ପିତାମହ ପ୍ରତାପ ଧନଞ୍ଜୟ ଭଞ୍ଜ ମହାକବି ଥିଲେ । ଏମାନଙ୍କ ଛଡ଼ା ଗୋପାଳ ଭଞ୍ଜ, ଯୁଗ ଭଞ୍ଜ ଓ ଘନ ଭଞ୍ଜ ପ୍ରଭୃତି ଏହି ରାଜ-ବଂଶର ଅନ୍ୟାନ୍ୟ କବିଙ୍କ ନାମ ମଧ୍ୟ ଉତ୍କଳରେ ପ୍ରସିଦ୍ଧି ଲାଭ କରି ଅଛି । କାବ୍ୟ-କବିତା ରଚନାର ଏତେ ଦୀର୍ଘ ପରମ୍ପରାର ଫଳ-ସ୍ୱରୂପ ଉପେନ୍ଦ୍ର ଭଞ୍ଜ ଯେ ନିଜ ସିଦ୍ଧି ଦେଇ ଉତ୍କଳର କବିସମ୍ରାଟ ହୋଇ ପାରିଅଛନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ବର୍ତ୍ତମାନ ଉପେନ୍ଦ୍ର ଭଞ୍ଜ କେବେ ଜନ୍ମ ହୋଇଥିଲେ ଓ କେବେ ତାଙ୍କର ଦେହାନ୍ତର ହୋଇଥିଲା, ଏହା ବିଚାର କରାଯାଉ ।

ତାଙ୍କର ରସଲେଖା କାବ୍ୟରୁ ମିଳେ ଯେ ଏହା ୧୭୧୪ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିଲା । ଏହା ତାଙ୍କ ଶେଷ କାବ୍ୟମାନଙ୍କ ମଧ୍ୟରୁ ଏକତମ । ଉପେନ୍ଦ୍ର ଭଞ୍ଜ ୧୭୨୫ ଖ୍ରୀଷ୍ଟାବ୍ଦରେ ଲୋକାନ୍ତରିତ ହୋଇଥିବାର ଓ ତାଙ୍କ ଜୀବନକାଳ ମୋଟେ ୪୦ ବର୍ଷ ଥିବାର ସିଦ୍ଧାନ୍ତ ହୋଇଅଛି । ତେଣୁ ସେ ୧୬୮୫ ଖ୍ରୀଷ୍ଟାବ୍ଦରେ ଜନ୍ମ ହୋଇଥିଲେ । କୁଲାଡ଼ଗଡ଼ ଘୁମୁସର ଭଞ୍ଜରାଜାମାନଙ୍କ ରାଜଧାନୀ ଥିଲା । ତାହାହିଁ ଉପେନ୍ଦ୍ରଙ୍କ ଜନ୍ମସ୍ଥାନ ।

ଉପେନ୍ଦ୍ରଙ୍କ ଜୀବନୀ ବିଷୟରେ ଅନ୍ତତଃ ଏତିକିମାତ୍ର କଥା ପ୍ରତ୍ୟେକ ଓଡ଼ିଆ ଜାଣିବା ଦରକାର ।

ବର୍ତ୍ତମାନ ଉପେନ୍ଦ୍ରଙ୍କ କାବ୍ୟ କବିତାର ବିଗ୍ରହ କରାଯାଉ । କାବ୍ୟର ଶରୀର ହେଉଛି ବର୍ଣ୍ଣ ଶବ୍ଦ ବାକ୍ୟ ଓ ଆତ୍ମା ହେଉଛି ଧ୍ୱନି ।

ଉପେନ୍ଦ୍ର ଭଞ୍ଜ ବହୁଳ ପରିମାଣରେ ଆଦିରସ ଚର୍ଚ୍ଚା କରିଛନ୍ତି ବୋଲି କୁହାଯାଏ । କିନ୍ତୁ ସେ ଯାହା କରିଛନ୍ତି, ତାହାକୁ କବିଧର୍ମ ବୋଲି ମାନିବାକୁ ହେବ । ପ୍ରକୃତିରେ ଯେଉଁ ମୁହୂର୍ତ୍ତରୁ ପୁରୁଷ ଓ ସ୍ତ୍ରୀ ଦେଖା ଦେଲେ ସେହି ମୁହୂର୍ତ୍ତରୁ ଶୃଙ୍ଗାର ରସ ଦେଖା ଦେଇଅଛି । ଏହି ଶୃଙ୍ଗାର ରସ କବି ଚର୍ଚ୍ଚା କରିବ ହିଁ କରିବ । ଏହା ନ କଲେ ସେ କବି ହେବ ନାହିଁ । ତେଣୁ ଯେ କବି, ସେ ଅବଶ୍ୟ ଶୃଙ୍ଗାରୀ । ଶୃଙ୍ଗାରୀ ନ ହୋଇ ମନୁଷ୍ୟ ନାହିଁ । ତେଣୁ ଉପେନ୍ଦ୍ରଙ୍କୁ ଶୃଙ୍ଗାରୀ କବି କହି ନିନ୍ଦା କରିବାର କିଛି ନାହିଁ । ପୃଥିବୀରେ ଯେତେ କବି ଅଛନ୍ତି ସମସ୍ତେ ପୁରୁଷ ଓ ସ୍ତ୍ରୀର ମଧୁର ସମ୍ପର୍କ ବିଷୟରେ କିଛି ନା କିଛି ଲେଖିଅଛନ୍ତି । ବାସ୍ତବିକ ଶୃଙ୍ଗାର ବିଷୟ ନ ଲେଖିଲେ କବିତାରେ ଚମତ୍କାରିତା ଆସେନାହିଁ ।

ଏହି ଶୃଙ୍ଗାର ରସର ଅନ୍ୟ ନାମ ଆଦିରସ—ଏକମାତ୍ର ଅସଲ ରସ । ଏହି ହେତୁରୁ ଯୋଗୀ ଭର୍ତ୍ତୃହରି ଶୃଙ୍ଗାର ଶତକ ଲେଖିଲେ—ଋଷି ବାତ୍ସ୍ୟାୟନ କାମସୂତ୍ର ଲେଖିଲେ । ସେକ୍ସପୀୟର ଲେଖିଲେ ଭିନସ ଓ ଆଡୋନିସ ( Venus and Adonis) ।

ଜଗତରେ ନରନାରୀ ପରସ୍ପରକୁ ନିବିଡ଼ ଓ ବିପୁଳ ଭାବରେ ପାଇବାପାଇଁ ଏହି ଶୃଙ୍ଗାର ହିଁ ରଚନା କଲେ ।

ଏହି ଶୃଙ୍ଗାର ପାଇଁ ଏତେ ବିଭାଘର ।

ଏଠାରେ ସ୍ୱୟମ୍ବର କଥା ଆସେ । ବିଭାଘର ଦ୍ୱାରା ଏକ ସ୍ତ୍ରୀ ଏକ ପୁରୁଷ ପ୍ରତି ଅତି ନିବିଷ୍ଟ ହେବାର ସୁଯୋଗ ମିଳେ ।

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ-କବିତାରେ ଏହି ଘନନିବିଷ୍ଟତାକୁ ପ୍ରକାଶ କରିବାର ଚେଷ୍ଟା କରାଯାଇଅଛି । ଦାମ୍ପତ୍ୟ ଜୀବନର ଘନନିବିଷ୍ଟତା ଗୋଟିଏ ମହାସତ୍ୟ । ଉପେନ୍ଦ୍ର ଭଞ୍ଜ ସାହିତ୍ୟରୁ ଏହା ଉତ୍ତମରୂପରେ ଉପଲବ୍ଧ ହୁଏ । ଏଥିରେ ପ୍ରଜାପତି ପରି ଏ ଫୁଲରୁ ସେ ଫୁଲକୁ ଉଡ଼ିଯାଇ ମଧୁ ଆହରଣ କରିବାର ଉପଦେଶ ନାହିଁ । ଏଠାରେ ଏକ ନାରୀ ଏକ ପୁରୁଷରେ ଘନନିବିଷ୍ଟ ହେବାର କଥା ଅଛି ।

ଉପେନ୍ଦ୍ର ଭଞ୍ଜଙ୍କ କଳ୍ପିତ ବିଶ୍ୱଘରର ସନ୍ତକ ଥିଲି ପ୍ରଜାପତି—ଅର୍ଥାତ୍ ବ୍ରହ୍ମାଙ୍କ ଛବି । ଆଜି ଏ ଅଶୃଙ୍ଖଳ ସମାଜର ବିବାହ ନିମନ୍ତ୍ରଣ ପତ୍ରରେ—ବିଭିନ୍ନ ଫୁଲରୁ ମଧୁ ଆହରଣ କରୁଥିବା ପ୍ରଜାପତି ପତଙ୍ଗର ଚିତ୍ର ଦେଖିବାକୁ ମିଳୁଅଛି ।

ଉପେନ୍ଦ୍ର ଭଞ୍ଜଙ୍କ ଉପରେ ତେବେ ଗୁଡ଼ିଏ ଲୋକ ଖଡ଼୍ଗହସ୍ତ କାହିଁକି ?

ଶିଶୁ ବାଳକ ହୋଇ ଜନ୍ମିଛି—ତାକୁ ସବୁବେଳେ ଲୁଗା ପିନ୍ଧ, ଲୁଗା ପିନ୍ଧ କୁହାଯାଉଛି । ସେ ତହିଁର ମର୍ମ କିଛି ବୁଝିନାହିଁ—ଅବହେଳା କରୁଛି । ଆମେ ତା ଉପରେ ଖଡ଼୍ଗହସ୍ତ ହେଉଛୁ କାହିଁକି ? ଆମ ମନର ଅଶ୍ଳୀଳତା ଆମକୁ ଅଧୈର୍ଯ୍ୟ କରି ଦେଉଛି । ଆମେ ଅଶ୍ଳୀଳ ନା ସେ ଶିଶୁ ଅଶ୍ଳୀଳ ? ଅତଏବ ଦେଖାଯାଉଛି ଅଶ୍ଳୀଳତା ଆମ ମନରେ ଅଛି; ବାହାରେ ନାହିଁ ।

କାରିଗର ଶିଳ୍ପୀ ନଗ୍ନ ମୂର୍ତ୍ତି ତିଆରି କରିଛି; କିଏ ବା ଯୁଗ-ବନ୍ଧ ମୂର୍ତ୍ତି ତିଆରି କରିଛି । ଶ୍ରେଷ୍ଠ ଶିଶୁର ସେ ସବୁରେ କିଛି ଯାଏ ଆସେ ନାହିଁ । ଯାଏ ଆସେ ଆମରି ମନର । ଆମ ମନଟି କମିତି ତାକୁହିଁ ଦେଖିବାକୁ ହେବ । ରସରଙ୍ଗ ପ୍ରେମ-ତରଙ୍ଗ ଏ ସବୁ ତ ଜୀବନର ରସ । ଏ ସବୁକୁ ପରିତ୍ୟାଗ କରିବୁ କିପରି ?

ତେବେ ସେହି ସଂଯମର କଥା ।

କବି ସେଥିପାଇଁ—ଉପେନ୍ଦ୍ର ଭଞ୍ଜ ସେଥିପାଇଁ ତାଙ୍କର ସମସ୍ତ କବିତାକୁ ଏପରି ସଂଯମରେ ବାନ୍ଧିଛନ୍ତି, ଯେ ଅସଲ ପ୍ରେମିକ ସେ କେବଳ ସେ କବିତାର ଆବରଣ ଫିଟାଇ ପାରିବ ଏବଂ ରସଭୋଗ କରି ପାରିବ ।

ଅତଏବ ଉପେନ୍ଦ୍ର ଭଞ୍ଜ ଅଶ୍ଳୀଳ ନୁହନ୍ତି; ଅଶ୍ଳୀଳ ଆଜିର ଅସଂଖ୍ୟ ଲେଖକ, ଯେଉଁମାନେ କି ଅସଲ ବୁଢ଼ାଳୀ ନୁହନ୍ତି । ଯେଉଁ-ମାନେ ସମୁଦ୍ରର ଅନନ୍ତ ଗାମ୍ଭୀର୍ଯ୍ୟକୁ ପ୍ରବେଶ କରି ନ ପାରି ନଗ୍ନ ବାଲୁକାରେ ନଗ୍ନ ସଙ୍ଗିନୀଙ୍କୁ ନେଇ କାମର ରସ ଉଦ୍‌ଗାର କରନ୍ତି, ସେମାନେ ପ୍ରେମର ହେମକିରଣ, ପ୍ରେମର ମଧୁର ଉଚ୍ଛ୍ୱାସ କିଛି ଅନୁଭବ କରି ପାରନ୍ତି ନାହିଁ । ଏହିମାନଙ୍କ ଭିତରୁ ଅନେକେ ଉପେନ୍ଦ୍ର ଭଞ୍ଜଙ୍କ ଭଳି କବିଙ୍କୁ ହଠାତ୍ ଅଶ୍ଳୀଳ କହି ପକାନ୍ତି । ସେମାନଙ୍କର ଚମତ୍କାରକ ମନ୍ତ୍ରର ସାଧନା କାହିଁ ? ସେମାନଙ୍କ ଉପରେ ଦେବତାର ଆଶୀର୍ବାଦ କାହିଁ ? ସେମାନେ ଯେ ପାପର କୃମି କୀଟ । ଅନ୍ତର ଭିତରେ ମନେ ମନେ ବ୍ୟଭିଚାର କରନ୍ତି । ବାହାରେ ଦେଖାଇ ହୁଅନ୍ତି ଯେ ସେମାନେ ବଡ଼ ସାଧୁ, ବଡ଼ ସଂଯମୀ ।

କିନ୍ତୁ ପ୍ରକୃତରେ ଏମାନେ ଭଣ୍ଡ । ମୁଖା ପିନ୍ଧି ଏମାନେ ଦେବତାର ପରିଚୟ ଦେବାକୁ ଚାହାନ୍ତି ।

ଶ୍ଳୀଳତା ଅଶ୍ଳୀଳତା ଉପରେ ଦୃଷ୍ଟି ରହିନାହିଁ । ପ୍ରକୃତରେ ସବୁଆଡ଼େ ସବୁବେଳେ ସୃଷ୍ଟି ଚାଲିଛି । ତାକୁ କିଏ ତେବେ ଅଶ୍ଳୀଳତା କହିବ ? ଭଓ୍ୱାଲି ଷ୍ଟେସନ (Bhowali Station) ଉପନ୍ୟାସ ଯେଉଁଠାରେ ଚାଲିଛି—କେତେ ସିନେମା କେତେଡ଼େ କଦର୍ଯ୍ୟ ହୋଇ ଦେଖା ଦେଉଛି—

ସେହିଠାରେ ଉପେନ୍ଦ୍ର ଭଞ୍ଜଙ୍କ ଲେଖାକୁ ଅଶ୍ଳୀଳ କହିବା ଶୋଭା-ପାଏ ନାହିଁ । ଯେଉଁମାନେ କହିବେ, ସେମାନେ ନିର୍ଲ୍ଲଜ । ଆଉ କୀଟସ (Keats), ବାଇରନ (Byron), ଶେଲି (Shelley) ସବୁ କବିଙ୍କ ଲେଖାରେ ଅଶ୍ଳୀଳତା ବାହାରିବ । ଏପରିକି ଟେନିସନ (Tennyson) ଙ୍କ ଲେଖାରେ ମଧ୍ୟ । Keatsଙ୍କର Akimbo, Tennysonଙ୍କ Enoch Arden ଏସବୁ କଣ କମ୍ ?

ଆର୍ତ୍ତବଲ୍ଲଭଙ୍କ ଭାଷାରେ—

"ଜୟଦେବଙ୍କ ଗୀତଗୋବିନ୍ଦ ଓ ଭାଗବତର ରସପଞ୍ଚାଧ୍ୟାୟୀ ବିଦ୍ୟା କବାଟୀ ବୋଲି ଆମ ଉତ୍କଳରେ କଥିତ; କାରଣ ଏମାନଙ୍କ ପାଠ ଜନସାଧାରଣଙ୍କ ନିମିତ୍ତ ଅଭିପ୍ରେତ ନୁହେଁ ।"

ଉପେନ୍ଦ୍ର ଭଞ୍ଜ ନିଜେ କହିଛନ୍ତି ବୋଲି ପ୍ରବାଦ ରହିଅଛି—

"ଜୟଦେବ ଦିନକୃଷ୍ଣ ପୟରେ ମୋ ଶରଣ
ଆନ କବିମାନଙ୍କର ମାଥେ ବାମ ଚରଣ ।"

ଅତଏବ ଆମ୍ଭମାନଙ୍କର ଜୟଦେବ-ଦିବସ ଦିନକୃଷ୍ଣ-ଦିବସ ମଧ୍ୟ ଖୁବ ଜୋରସୋରରେ ପାଳନ କରିବା ଉଚିତ ।

ଖରାଦିନେ ଖରାବେଳେ ଯୋଗୀ ଯେତେବେଳେ ଘର ଘରକୁ ଯାଇ କୁକୁଆଁରେ ଗୀତ ଗାଉଥାଏ, ସେତେବେଳେ ସେହି ପ୍ରାଚୀନ-କାଳର ସୁରଟିଏ କାନରେ ବାଜୁଥାଏ ।

ସେଥିରେ ଗୋଟିଏ କରୁଣତା ଅଛି, ଗୋଟିଏ ବ୍ୟଥା ଅଛି, ଗୋଟିଏ ମାଧୁର୍ଯ୍ୟ ମଧ୍ୟ ଅଛି । ସେହି ଗୀତର ସୁର ଆମକୁ ବହୁ ଶତାବ୍ଦୀ ପଛକୁ ଠେଲି ନେଇଯାଏ; କହିଯାଏ ପୁଣି ଥରେ କାହାଣି ଥିଲା ଆମର ।

ସେହି ସମୟରେ ପକ୍ଷୀ ଗାଇଉଠେ, କୁକୁଟ ଡାକଛାଡ଼େ— ସୀମନ୍ତିମୀ ଗୃହକୋଣରେ ନିବସ୍ତ୍ରା ହୋଇ ଶୁଣେ—ସେହି ମଧୁର ଆରତି ସେହି ବୁକୁଭରା ଆର୍ତ୍ତି—ସେହି ସମୟରେ ଉପେନ୍ଦ୍ର ଭଞ୍ଜ ଦୀନକୃଷ୍ଣ ପ୍ରଭୃତି ଭାସି ଆସନ୍ତି; ଆମ ହୃଦୟରେ ଗୋଟିଏ କଲ୍ଲୋଳ ସୃଷ୍ଟି କରନ୍ତି ।

ଆମେ ଯେତେ ସେ ଯୁଗକୁ ଛାଡ଼ି ଆସିଥାଉଁ ପଛକେ, ସେହି ଯୁଗର ଧ୍ୱନି ଯେତେବେଳେ ଆମ କର୍ଣ୍ଣରେ ବାଜେ, ସେତେବେଳେ ଆମର ପୂର୍ବପୁରୁଷଙ୍କୁ ଆମ୍ଭେମାନେ ଦେଖିପାରୁଁ—ସେମାନେ ସତେ ଯେପରି ଆମ୍ଭମାନଙ୍କ ସହିତ କଥା କହୁଛନ୍ତି । ଏହା ବାସ୍ତବିକ ବଡ଼ ହୃଦ୍ୟ, ବଡ଼ ଚିତ୍ତାକର୍ଷକ । ସେହି ସମୟରେ ଗ୍ରୀଷ୍ମର ତାପକୁ ଭେଦି ମଳୟ ପବନ ବହିଆସେ । ଦେହଟା ଶିରଶିର ହୋଇଯାଏ । ଆମ୍ଭେ ସେହି ଗୀତ ଶୁଣି ସେମାନଙ୍କ ସହିତରେ ଏକ ହୋଇଯାଉଁ । ସେହି ଯୁଗକୁ ଆମେ ଧାଇଁଯାଉଁ ଆଉ ସେ ଯୁଗର ପୂର୍ବପୁରୁଷ ଆମର ଆମ ସହିତରେ ବସନ୍ତି । ଏହି ଏକତ୍ର ବସିବାର ସୌଭାଗ୍ୟ ଲାଭ କରୁ ଆମେମାନେ ଯୋଗୀମୁଖରେ ଉଚ୍ଚାରିତ ପ୍ରାଚୀନ କବିମାନଙ୍କର ପଦାବଳୀ ଶ୍ରବଣ କରି ।

ବିଶ୍ୱନାଥ କର ଅବଶ୍ୟ ଲାବଣ୍ୟବତୀର

"ବାଳଭାନୁ ଜାନୁ ଗିରି ଗୁହାରେ
ସ୍ଥିତ ତା ଭାନୁ କି ଆଗ ବାହାରେ"...

ପଢ଼ି ଅଗ୍ନିଶର୍ମା ହୋଇଥିଲେ । କିନ୍ତୁ ରାଗିବାର କୌଣସି କାରଣ ନ ଥିଲା । କବିଙ୍କ ଲେଖାରେ ସବୁ କଥା ଥାଏ—ହିତବାଣୀ, ଯୌବନ କାହାଣୀ, ଦାରୁଣ ବିରହ ଇତ୍ୟାଦି । ଅତଏବ ଘୃଣା କରିବାର କିଛି ନାହିଁ । ସେ ତ ଜୀବନକୁ ବ୍ୟକ୍ତ କରି ଯାଇଛନ୍ତି

କାବ୍ୟରେ ସମଗ୍ର ଭାବରେ । ତାକୁ ତ ପଢ଼ିବାକୁ ହେବ ତନ୍ମୟ ହୋଇ । ଏ କାବ୍ୟ ଅବଶ୍ୟ ଭିନ୍ନ । ସମୟର ରୁଚିପ୍ରବାହ ଯେନ ଆମର ବିଚାର ଭିନ୍ନ ହୋଇଥାଏ । ବିଶ୍ୱନାଥଙ୍କ ଜୀବନରେ ମଧ୍ୟ ତାହା ହୋଇଥିଲା । ମଧୁସୂଦନ ରାଓ କିନ୍ତୁ ଏହା ଦେଖି ତଟସ୍ଥ ହୋଇଥିଲେ—କାହିଁକି ? ଏ ଇନ୍ଦ୍ରଧନୁ ବିଜୁଳି ବିବାଦ ନୁହେ— ପରସ୍ପର ଗାଳି ବର୍ଷଣ ।

ଉପେନ୍ଦ୍ର ଭଞ୍ଜଙ୍କ ଲେଖାରେ କଳ୍ପନା, ପ୍ରକାଶ ଗୃଢ଼ଭଙ୍ଗୀ, ଉପମା, ଉତ୍ପ୍ରେକ୍ଷା ଇତ୍ୟାଦି ଅତୀବ ମନୋରମ; ଏଥିରେ ସନ୍ଦେହ ନାହିଁ ।

ଆମ୍ଭମାନଙ୍କର ଓଡ଼ିଆ କବିତା ହୃଦୟଗ୍ରାହୀ ହୋଇ ପାରୁ-ନାହିଁ କାହିଁକି ? ତାର କାରଣ ହେଉଛି, ଆମ୍ଭମାନଙ୍କ ପରମ୍ପରାରେ ଯେଉଁସବୁ ଓଡ଼ିଆ ଶବ୍ଦ ଭାଷାକୁ ଆସିଛି, ଆମେ ସେ ସବୁର ବ୍ୟବହାର ନ କରି ସହଜ ନୂଆ ଅନ୍ୟ ଭାଷାର ଶବ୍ଦ ନେଇ ସାହିତ୍ୟ ଓ କବିତାରେ ବ୍ୟବହାର କରୁଛୁ । ସେଥିପାଇଁ ଆମର ହୃଦୟ ତନ୍ତ୍ରୀରେ ଠିକ ଆଓ୍ୱାଜ କରି ପାରୁନାହିଁ—ସେଠାରେ ଠିକ ପ୍ରତିଧ୍ୱନି କରି ପାରୁନାହିଁ ।

ଅତଏବ ଆମର ପ୍ରାଚୀନ ସାହିତ୍ୟକାରଙ୍କ ସାହିତ୍ୟରେ ଆମର ପୂର୍ବପୁରୁଷଙ୍କ ହୃଦୟ-ତନ୍ତ୍ରୀରେ ବାଜିଥିବା ଏବଂ ଭାବବିହ୍ୱଳ କରିଥିବା ଶବ୍ଦଗୁଡ଼ିକୁ ବାଛିବୁ, ବାଣ୍ଟିବୁ ଏବଂ ଆମ ସାହିତ୍ୟରେ ବ୍ୟବହାର କରିବୁଁ । ତାହାହେଲେ ହୃଦୟର କମ୍ପନ ଠିକ ବାଜି ଉଠିବ ।

ଆଜି ତାହା ହେଉନାହିଁ । ଏହି ଯେ ମଝିରେ କେତେ ଯୁଗ ବଙ୍ଗଳାର ଧ୍ୱନି ଆମ ଉପରେ ପଡ଼ିଲା, ଆମର ଓଡ଼ିଆ ଶବ୍ଦଧ୍ୱନି

ଚୂପ ହୋଇଯାଇଥିଲା । ତା ଫଳରେ ଆମେ ଓଡ଼ିଆ ସାହିତ୍ୟକୁ ଶ୍ରୁତିମଧୁର ଏବଂ ଭାବବୈଭବର କରି ପାରିଲୁ ନାହିଁ ।

ଧରନ୍ତୁ ଏହି କଥାଟି ଲାବଣ୍ୟବତୀର ୪ର୍ଥ ଛାନ୍ଦକୁ—

"ମାଙ୍ଗ ଭାଙ୍ଗ ରଖି ଉତ୍ତମାଙ୍ଗରେ
ଆପୂର୍ତ କରି ସାମନ୍ତିଲେ ଧୀରେ
କରେ ଧରି ମୂଳେ ଭିଡ଼ା ଭିଡ଼ନ୍ତେ
ଅଦ୍ଭୁତ ଉପମା ଜନ୍ମିଲା ଏଥେ ଯେ
ଘନୋବନଦ ମଧ୍ୟରୁ ଯେ
ସ୍ରବୁଛି କାଳିନ୍ଦୀ ଦ୍ରବୁଛି ଶୃଙ୍ଗରୁ
ହାହା ସେ ଅତ୍ୟନ୍ତ ଗୁରୁ ଯେ ।"

ଉପେନ୍ଦ୍ର ଭଞ୍ଜଙ୍କ ଲେଖା ଭିତରେ ପ୍ରବେଶ କରିବାକୁ ହେଲେ ମୋର ମତରେ ପ୍ରଥମେ ଲାବଣ୍ୟବତୀ ଭଳି ସହଜ କାବ୍ୟକୁ ପଢ଼ିବାକୁ ହେବ । ଏହା ଖୁବ ସହଜ କରି ଲେଖାଯାଇଛି ।

ପ୍ରାଚୀନ କାବ୍ୟ କବିତା ପଢ଼ିଲେ ସେକାଳର ଇତିହାସ ମଧ୍ୟ ଆମକୁ ଅନେକ ଜଣାପଡ଼େ; ଏହି ଦେଖନ୍ତୁ ଲାବଣ୍ୟବତୀର ୭ମ ଛାନ୍ଦରେ ଅଛି:—

"ଶୁଭ୍ର କାଗଜ ଲାହୁରି ଦେଶ ଜାତ
ବାମ କାଞ୍ଚନ ମାଳା ଅପ୍ରମିତ ।
ସିନ୍ଧୁ ଜାତ ହସ୍ତ ଭାରବାହ ଖର
ବଜ୍ରଜାତି ଗଜ ପାଟଭାଲ କର ।
ନେପାଳକା ମୂଷିକା ଶାଳିଆ ଗୁରୁ
ଲବଙ୍ଗର ଲତା ଜାତି ଫଳ ତରୁ ।

ଚକୋରକ ଦିନଙ୍କାତା ପାରିବତ
କଳପନ ଶୂନ୍ୟଖଣ୍ଡ ସୁରଞ୍ଜିତ ।”
—ଇତ୍ୟାଦି

ଉପେନ୍ଦ୍ର ଭଞ୍ଜଙ୍କ କବିତା ପାଲି ମାଧ୍ୟମରେ ବିଶେଷଭାବରେ ପ୍ରଚାରିତ । ତେଣୁ ପାଲି କେଉଁଠାରୁ ହୋଇଛି, ଆଲୋଚନା କରାଯାଉ । ମୋର ମନେ ହୁଏ, ପାଳି ଧରି ଗାଆନ୍ତି ବୋଲି ଏହାର ନାମ 'ପାଲି' ହୋଇଅଛି ।

ପୁଣି 'ପଲ୍ଲୀ' ଶବ୍ଦରୁ ଏହି 'ପାଲି' ଶବ୍ଦର ଉତ୍ପତ୍ତି ହୋଇଥିବ । କାରଣ ପାଲି ପଲ୍ଲୀର ଜିନିଷ ।

ପାଲିର ବିଷୟବସ୍ତୁ କଅଣ ? ଆନ୍ଧ୍ର ଦେଶରେ ବୁରାକଥା ବୋଲି ଗୋଟିଏ ଶବ୍ଦ ଅଛି । ଏହା ପାଲି ପରି । ଲୋକେ କୌଣସି ଗୋଟିଏ ବିଷୟ ନେଇ ଗୀତ ରଚନା କରି ଏହାକୁ ଗାଆନ୍ତି । ସେହି ବୁରାକଥା ତାତ୍କାଳିକ ଗୀତ ରଚନାରେ ପୁଷ୍ଟ । ଠିକ ଆମ ପାଲି ପରି ।

ଜଙ୍ଗଲି ଜାତିଙ୍କ ମଧ୍ୟରେ ମଧ୍ୟ ଏହି ତାତ୍କାଳିକ ଗୀତିରଚନା ପ୍ରଥା ରହିଛି । ସ୍ତ୍ରୀ ଗୋଟିଏ ପଦ ବୋଲିଲେ ତାକୁ ଯେତେ ପୁରୁଷ ଥିବେ, ପୁଣି ଥରେ ବୋଲିବେ । ପୁରୁଷମାନେ ପୁଣି ତାର ଜବାବ ଆଉ ଗୋଟିଏ ପଦରେ ଦେବେ । ଏହିପରି ଉତ୍ତର ପ୍ରତ୍ୟୁତ୍ତର ଚାଲିଥିବ ଅବିରାମ ଗତିରେ, ରାତି ପାହିଯିବ ।

ମହାରାଷ୍ଟ୍ରରେ ପାହାଡ଼ା ବୋଲି ଗୋଟିଏ କଥା ଅଛି । ଏଥିରେ ସେହିପରି ତାତ୍କାଳିକ ରଚନା କରି ଜଣେ ଗାଏ । ଅନ୍ୟମାନେ ପାଳିଧରି ତାକୁ ଗାଆନ୍ତି । ବିଶେଷତଃ ଶିବାଜୀଙ୍କ ବୀରଗାଥା ସେହି

ଫାହାଡ଼ାରେ ବୋଲାଯାଏ । ମୁଁ ଶୁଣିଛି, ଫାହାଡ଼ା ମଧ୍ୟ ସେହି ପଲ୍ଲୀଗୀତ ।

ଗୁଜୁରାଟୀମାନଙ୍କ ମଧ୍ୟରେ ନବରାତ୍ର ହୁଏ—ଦଶହରା ସମୟରେ । ସେତେବେଳେ ସେମାନେ ନାଚ ଗାନ କରନ୍ତି । ଯୁବୁଷମାନେ ଗୋଟିଏ ପାଖ, ନାରୀମାନେ, କୁମାରୀମାନେ ଗୋଟିଏ ପାଖ ହୋଇ ଏଥିରେ ଉତ୍ତର ପ୍ରତ୍ୟୁତ୍ତର ଦିଆ ଦେଇ ହୁଅନ୍ତି । ଏହାକୁ ମଧ୍ୟ ସେହି ପଲ୍ଲୀଗୀତ ବା ଫାଲ୍ ବୋଲିବାକୁ ହେବ । ସେମାନଙ୍କର ଗୋଟିଏ ନାଚ ଏଥି ସହିତ ମଧ୍ୟ ହୁଏ । ତାକୁ ସେମାନେ ଗର୍ବା କହନ୍ତି ।

ଆମ୍ଭମାନଙ୍କ କେଳାକେଳୁଣୀ ଗୀତ ଓ ନାଚ, ଚୈତ-ଘଣ୍ଟ ଗୀତ ଓ ନାଚ ମଧ୍ୟ ଏହି ପଲ୍ଲୀଗୀତ—ଫାଲ୍ ।

ଆସାମରେ ସେହିପରି ବର ଗୀତ । ଏହା ଅବଶ୍ୟ ଭକ୍ତି-ରସାତ୍ମକ ।

ମୋର ଜଣେ ପ୍ରବୀଣ ଗୁରୁ ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ଲେଖିଅଛନ୍ତି :—

"ପ୍ରାଚୀନ ଉତ୍କଳ-ସାହିତ୍ୟ ପ୍ରଗତିର ପରିପନ୍ଥୀ ନୁହେଁ, ବରଂ ଅଧୁନା ମୃତପ୍ରାୟ କଳ୍ପିତ ହେଉଥିଲେହେଁ ଏଥିରେ ପ୍ରାଣର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ । ଜାତୀୟ-ଜୀବନର ସାଂସ୍କୃତିକ-ବିକାଶ ସଙ୍ଗେ ଶାଶ୍ୱତ ଜ୍ଞାନର ଉନ୍ମେଷ, ଶବ୍ଦାର୍ଥ ବୈଚିତ୍ର୍ୟ, ନୂତନତ୍ୱ, ଆକସ୍ମିକତା ଓ ଚମତ୍କାରିତା ଆଦି ବିଭବମାନ ଏଥିରେ ପୂର୍ଣ୍ଣ-ମାତ୍ରାରେ ବିଦ୍ୟମାନ ଥିବାରୁ ଏକ ସମୟରେ ଏ ଅନ୍ୟାନ୍ୟ ସମସାମୟିକ ପ୍ରାଦେଶିକ ଭାଷାମାନଙ୍କଠାରୁ ଓଡ଼ିଆ ଭାଷାକୁ ଋଦ୍ଧିମନ୍ତ କରିଥିଲା । ଆଦର୍ଶ ଓ ଉପଭୋଗ ଯୁଗପତ୍ ଯୋଗାଇ ଓଡ଼ିଆମାନଙ୍କୁ ପ୍ରାଣବନ୍ତ ଓ ସରସ କରିଥିଲା । କିନ୍ତୁ ପ୍ରଗତି ଅନନ୍ୟ ଜୀବନ୍ତ

ହେଲେହେଁ ଓଡ଼ିଶାରେ ସେପରି ନ ହୋଇ ଏବେ ସୁଦ୍ଧା ଜୀବନ୍ମୃତ ଓ ଏଥିରେ ପ୍ରାଣର ସ୍ପନ୍ଦନ ପୂର୍ବପରି ବିଶେଷ ଭାବରେ ପରିଲକ୍ଷିତ ହୋଇପାରିନାହିଁ । ପ୍ରଗତିରେ ନୂତନ ପରମ୍ପରାର ସୃଷ୍ଟି ହେବା ସ୍ୱାଭାବିକ । କିନ୍ତୁ ଓଡ଼ିଆ ତାର ଭାଷାର ମୌଳିକତା ପ୍ରତି ପୂର୍ଣ୍ଣ ଦୃଷ୍ଟି ନ ରଖିଲେ ଓଡ଼ିଆର ପ୍ରକୃତି ବିରୁଦ୍ଧରେ ଭବିଷ୍ୟତ ସମାଜ ନିୟନ୍ତ୍ରିତ ହେବା ଅସମ୍ଭବ ହେବ ଓ ତାର ବୈଶିଷ୍ଟ୍ୟ ଅଭାବ ପାଇଁ ଯେଉଁ ସାହିତ୍ୟ-ସୌଧ ତୋଳାହେବ, ତାହା ଉପଯୁକ୍ତ ଭିତ୍ତି-ଭୂମିର ଅଭାବରୁ ଦୁର୍ବଳ ହୋଇ ଭୂଷୂଡ଼ି ପଡ଼ୁଥିବ । ଏଥିପାଇଁ ଆଧୁନିକ ସାହିତ୍ୟିକମାନଙ୍କର ଗୁରୁଦାୟିତ୍ୱ ହେଉଛି ମୌଳିକତା ଓ ବୈଶିଷ୍ଟ୍ୟ ଉପରେ ପୂର୍ଣ୍ଣ ଦୃଷ୍ଟି ରଖି ଭବିଷ୍ୟତ ସମାଜକୁ ନିୟନ୍ତ୍ରଣ କରି ଭଳି ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି କରିବା ।

ନଚେତ୍ 'ପ୍ରଗତି' 'ପ୍ରଗତି' କରି ଓଡ଼ିଆ ଆତ୍ମଘାତି-ନୀତି ବରଣ କରିବ ।

ବାସ୍ତବରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ବିଶେଷତଃ ଭଞ୍ଜୀୟ ସାହିତ୍ୟ ଅତି ମହିମାମୟ ।

ଏହାର ସମ୍ୟକ୍ ଆଲୋଚନା ଏଠାରେ ଯୁକ୍ତିଯୁକ୍ତ ବିବେଚିତ ନ ହେଉଥିଲେ ହେଁ ଭଞ୍ଜ ଅମର କବି ବାଲ୍ମୀକି ଓ କାଳିଦାସ ପ୍ରଭୃତିଙ୍କ ସମକକ୍ଷ ଥାଇଁ କେତେକ ସ୍ଥଳରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରରେ ସେମାନଙ୍କୁ ବଳିଯାଇ ଏକାଧାରରେ ସୁଧୀ ସାହିତ୍ୟ ଓ ଗଣ-ସାହିତ୍ୟ ସୃଷ୍ଟି କରି ଯେଉଁ ଅଲୌକିକ ପ୍ରତିଭାର ପରିଚୟ ଦେଇ ଅଛନ୍ତି, ତାହା କେହି ନିରପେକ୍ଷ ସମାଲୋଚକ ଅସ୍ୱୀକାର କରିବେ ନାହିଁ ଓ ବିଶ୍ୱରେ ସେ ଜଣେ ଶ୍ରେଷ୍ଠ କବି ବୋଲି ବାଧ୍ୟ ହୋଇ ସ୍ୱୀକାର କରିବେ ।

ତାଙ୍କର ଲଳିତ ମଧୁର ଛନ୍ଦୋବନ୍ଧଯୁକ୍ତ କାବ୍ୟରାଜିରେ ଓଡ଼ିଆ ଜାତି ଯେପରି ଉଦ୍‌ବୁଦ୍ଧ ହୋଇଥିଲା, ଆଧୁନିକ କାବ୍ୟାବଳୀରେ ସେପରି ପ୍ରାଣ-ପ୍ରତିଷ୍ଠା ନ ଥିବାରୁ ତାହା ପ୍ରାଣରେ ସ୍ପନ୍ଦନ ଆଣୁନାହିଁ ।

ତାଙ୍କର ନାୟକ ନାୟିକାଙ୍କର ଚରିତ୍ର ଚିତ୍ରଣରେ ଯେଉଁ ଆଦର୍ଶ ନିହିତ ଅଛି, ତାହା ଓଡ଼ିଆର ଅନୁସରଣୀୟ ଓ ଅନୁକରଣୀୟ ହେଲେ ତାର ଗାର୍ହସ୍ଥ୍ୟ ଓ ସାମାଜିକ ଜୀବନରେ ଗୋଟିଏ ମଧୁର ସ୍ପନ୍ଦନ ଆସନ୍ତା ଓ ସେ ଇହଜୀବନରେ ଓ ଜୀବନର ପରପାରରେ ପରମ ସୁଖ ଓ ପରମ ଶାନ୍ତି ଲଭି କରନ୍ତା ।

ତାଙ୍କର କାବ୍ୟଗୁଡ଼ିକ ପ୍ରସାଦଗୁଣ ବିଶିଷ୍ଟ ଓ ସତ୍ୟକବିତାର ସ୍ୱାଭାବିକ ବିଭବମାନଙ୍କରେ ପୂର୍ଣ୍ଣ ଥିବାରୁ ପାଠକ ବା ଶ୍ରୋତାଙ୍କୁ କୌଣସି କାଳରେ ତୃପ୍ତିରେ ଅବସାଦ ଆଣେନାହିଁ; ବରଂ ନବ ନବାୟମାନ ହୋଇଉଠେ ।

ପ୍ରାଚୀନ କାବ୍ୟମାନଙ୍କରେ ଆଦିରସର ବାହୁଲ୍ୟତା ଦେଖାଇ ଯେଉଁମାନେ ଭ୍ରୂକୁଞ୍ଚନ କରନ୍ତି, ସେମାନେ ବୋଧହୁଏ 'ଆଗୁର' ଯେ ଦେଶକାଳ ଓ ରୁଚିର ଅନୁବର୍ତ୍ତୀ ଏହା ଭୁଲିଯାଇ ଅଛନ୍ତି ଓ ସେମାନେ ବସ୍ତୁବତାର ବହୁଦୂରକୁ ଯାଇ ସତ୍ୟର ଅପଳାପ କରୁଛନ୍ତି ବୋଲି ମନେହୁଏ ।

ଆହୁରି ମଧ୍ୟ ଏଠାରେ ଗୋଟିଏ କଥା ଉଲ୍ଲେଖ କରାଯାଇ ପାରେ ଯେ—

"ପୁଂସ ପୁଂସ୍ମୀ ଭଡ଼ାଭଡ଼ି ଭଞ୍ଜ କାବ୍ୟକୁଞ୍ଜ"

ଓ "ଗୃହ ଚଇତାଳି ଚପଳ ବଳାସେ
ଭସିଲେ କି ହେବ କବି"

ଇତ୍ୟାଦି ଇତ୍ୟାଦି ସମାଲୋଚନାର ଯଥାର୍ଥ ଉତ୍ତର ଦେଇ

କବିସମ୍ରାଟ ନିଜେ ଲେଖିଛନ୍ତି :—

"ନାରିକେଳ ଯେ ରସ ପୂରି
ଭକ୍ଷି ନ ପାରଇ ବାନର ।"

ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ପରବର୍ତ୍ତୀ କବିମାନେ ପୂର୍ବତନ ବିଶିଷ୍ଟ କବିମାନଙ୍କର ପ୍ରଭାବରେ ପ୍ରଭାବିତ ହୁଅନ୍ତି । ସେହିପରି ଭଞ୍ଜ ଅମର କବି ବାଲ୍ମୀକି ଓ କାଳିଦାସ ପ୍ରଭୃତିଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ସ୍ୱାଭାବିକ; ତଥାପି ଭଞ୍ଜଙ୍କର ମୌଳିକତା ଓ ସହଜ ପ୍ରକାଶ-ନୈପୁଣ୍ୟ ଯେପରି ଚମତ୍କାର ଏବଂ ମନୋହର ଶବ୍ଦ-ଯୋଜନା ଓ କାନ୍ତ ପଦାବଳି ଯେପରି ଚିତ୍ତାକର୍ଷକ ଓ ଭାବୋଦ୍ଦୀପକ ଅନ୍ୟତ୍ର କୁତ୍ରାପି ସେପରି ପରିଦୃଷ୍ଟ ହେବାଭଳି ମୋର ମନେହୁଏ ନାହିଁ ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ସାହିତ୍ୟ କ୍ଷେତ୍ରରେ ଆମ୍ଭମାନଙ୍କର ଆଭିଜାତ୍ୟ ଗର୍ବ ପାଇଁ ପ୍ରାଚୀନ କାବ୍ୟ-କଳା, ବିଶେଷ ଭାବରେ ଭଞ୍ଜୀୟ ସାହିତ୍ୟ ଅନୁଶୀଳିତ ହେବା ଉଚିତ ।

କବିସମ୍ରାଟ ଉତ୍କୃଷ୍ଟା କଳାମୟୀ ଉତ୍କଳରେ ଜନ୍ମଗ୍ରହଣ କରିଥିବାରୁ ସେ ଧନ୍ୟ ହୋଇ ଅଛନ୍ତି ଓ ଉତ୍କଳମାତା ତାଙ୍କ ପରି ଶ୍ରେଷ୍ଠ ବାଣୀ-ପୁତ୍ରଙ୍କୁ ଲଭି କରି ମଧ୍ୟ ଧନ୍ୟ ହୋଇଅଛି । ଆମ୍ଭେମାନେ ତାଙ୍କ ପ୍ରତିଭାର ପୂଜା କରି ଧନ୍ୟ ହୋଇଅଛୁଁ ।

ଉପସଂହାର କରି ପୂର୍ବରୁ ଗଞ୍ଜାମରୁ ସଂଗୃହୀତ ଉପେନ୍ଦ୍ର ଭଞ୍ଜଙ୍କ ଜାତକର ନକଲ ମୁଁ ପ୍ରଦାନ କରୁଅଛି । ବହୁବର୍ଷ ତଳେ ଉପେନ୍ଦ୍ର ଭଞ୍ଜଙ୍କର ପ୍ରତିକୃତି ମୁଁ କଳିଙ୍ଗ-ଭାରତୀ ଓ ଉତ୍କଳ ଯୁବ-ସାହିତ୍ୟ-ସମାଜର ପ୍ରତିଷ୍ଠାତା ଶ୍ରୀମାନ୍ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କୁ

ଅର୍ପଣ କରିଥିଲି; ଯାହାକି ସେ ବ୍ଲକ କରି ତାଙ୍କ କବିତା କୁମୁଦ ଗ୍ରନ୍ଥରେ ପ୍ରକାଶ କରି ଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ଜୀବିତ କାଳ ୧୬୮୫ରୁ ୧୭୨୫ ବୋଲି ମୁଁ ସେ ପ୍ରତିକୃତି ତଳେ ଉଲ୍ଲେଖ କରିଥିଲି । ଆଜି ମୁଁ ଉପେନ୍ଦ୍ର ଭଞ୍ଜଙ୍କ ବଂଶଧର କୁଲଡ଼ଗଡ଼ ନିବାସୀ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କଠାରୁ ପ୍ରାପ୍ତ ଉପେନ୍ଦ୍ର ଭଞ୍ଜଙ୍କ ଜାତକର ନକଲ କଳିଙ୍ଗ-ଭାରତୀ ଅନୁଷ୍ଠାନ ହସ୍ତରେ ଏତଦ୍ଦ୍ୱାରା ଅର୍ପଣ କରୁଅଛି ।




ଆପଣମାନଙ୍କ ବଳିଷ୍ଠ ସହଯୋଗ ଓ ହାର୍ଦ୍ଦିକ ସହାନୁଭୂତିରେ ଏହି ଷୋଡ଼ଶ-ବାର୍ଷିକ ଭଞ୍ଜଜୟନ୍ତୀ ସର୍ବତୋଭାବରେ ଜୟଯୁକ୍ତ ହେଉ ।